# ଗୀତି ଚଇତାଳି

## ଗୀତି ଚଇତାଳି

(ଗୀତି କବିତା ସଂକଳନ)


ରଚନା

**ରସରାଜ ନାରାୟଣ ପ୍ରସାଦ ସିଂହ**

ଏ-୨୨୪, ସେକ୍ଟର-ଏ, ଜୋନ୍-ବି,
ମଞ୍ଚେଶ୍ୱର ଶିଳ୍ପାଞ୍ଚଳ, ଭୁବନେଶ୍ୱର- ୧୦
ଦୂରଭାଷ- ୦୬୭୪-୨୫୮୮୯୮୮
୯୨୩୮୬୯୯୨୮୮



ପ୍ରଚ୍ଛଦ-ସୁଦର୍ଶନ ଦାସ
ଅଲଙ୍କରଣ- ରଞ୍ଜନ କୁମାର ପାଣିଗ୍ରାହୀ

ମୂଲ୍ୟ: ୬୦ ଟଙ୍କା

ପ୍ରଥମ ପ୍ରକାଶ : ୨୮ ମେ ୨୦୦୬

ପ୍ରକାଶକ :
ରସରାଜ ଗୀତିକୁଞ୍ଜ,
ଭୁବନେଶ୍ୱର-୧୦


**GEETI CHAITALI**

(Modern Lyric Collection)


**Author-**
**Rasaraj Narayan Prasad Singh**
A-224, Sector-A, Zone-B
Mancheswar Industrial Estate-
Bhubaneswar-751010,
Phone: 2588988 / 9238699288



**Cover & Design-**Sudarshan Das
**Type Set-** Ranjan Kumar Panigrahi

Rupees - 60/-

**Printer**
**Mahabir Enterprises**
HIG-14/4, Garaje Complex, C.S.Pur,
BBSR., Ph. (0674) 2740788

**First Edition : 28 May 2006**

**Publisher :**
**Rasaraj Geetikunja**
A-224, Sector-A, Zone-B,
Mancheswar Industrial Estate,
Bhubaneswar- 751010

ଗୀତି ଚଇତାଳି

## ସମ୍ପର୍କର ସୂତାରେ ଗୀତି କବିତା

ଗୀତ ସମସ୍ତଙ୍କର ପ୍ରିୟ । ମନୁଷ୍ୟ, ପଶୁ, ପକ୍ଷୀ, ବୃକ୍ଷ, ଲତା, ଏପରିକି ଜଡ଼ ଜଗତ-ସବୁଠାରେ ଗୀତର ଆଦର । ଗୀତ ମନରେ ଆନନ୍ଦ ଭରେ, ପ୍ରାଣକୁ ଉଲ୍ଲସିତ କରେ, ନୟନରୁ ନୀର ଝରାଏ, ବେଦନା ଉପଶମ କରେ, ବୃକ୍ଷକୁ ପଲ୍ଲବିତ କରେ । ଗୀତ ସହିତ ସମସ୍ତେ ଅନାବିଳ ସମ୍ପର୍କରେ ଅନୁବନ୍ଧିତ ।

ଭଲ ଗୀତଟିଏ ପାଇଁ ଲୋଡ଼ା ଏକ ସାମୂହିକ ପ୍ରଚେଷ୍ଟା । ସେଇ ପ୍ରଚେଷ୍ଟାର ମୂଳଦୁଆ ଆରମ୍ଭ କରନ୍ତି, ଗୀତିକବି । ଭାଷା ଓ ଭାବର ସମନ୍ୱୟରେ ଗୀତିକବି ଗୀତ ରଚନା କରନ୍ତି । ସୁରକାର ସେଇ ରଚନାରେ ସୁର ଆରୋପଣ କରନ୍ତି । ଯନ୍ତ୍ର ଶିଳ୍ପୀ ଗୀତର ଛନ୍ଦରେ ରଙ୍ଗ ଭରି ଦିଅନ୍ତି । ସଙ୍ଗୀତ ଶିଳ୍ପୀ ସୁରର ଆରୋହ ଓ ଅବରୋହ ମଧ୍ୟରେ ଗୀତକୁ ଶ୍ରୁତି ମଧୁର କରନ୍ତି । କିନ୍ତୁ ସେଥିରେ ଗୀତିକବିର ସର୍ବପ୍ରଥମ ଭୂମିକା ଅନସ୍ୱୀକାର୍ଯ୍ୟ । କାରଣ ଗୀତିକବି ପ୍ରଥମେ ଗୀତ ରଚନା ମାଧ୍ୟମରେ ଭାବକୁ ରୂପଦେଇ ଗୀତର ଜୀବନ୍ୟାସ ଦିଅନ୍ତି ।

ଗୀତି କବିତାର ସଂଜ୍ଞା ହେଲା - ଭାବର ମହକ ଭରା ଶବ୍ଦର ରଙ୍ଗିନ ଫୁଲମାନଙ୍କୁ ସୁରର ସୂତାରେ ଗୁନ୍ଥି ମାଳା ରଚନା କରିବା । ଗୀତି କବିତା ରଚନା ପରେ ସମ୍ପର୍କର ସୂତା ଲମ୍ବିଯାଏ ସୁରକାର, ବାଦ୍ୟକାର ଓ କଣ୍ଠ ଶିଳ୍ପୀମାନଙ୍କ ପାଖକୁ । ତାହା ପରେ ଗୀତି କବିତାଟି ଫୁଲ ହୋଇ ଫୁଟି ଉଠେ କଣ୍ଠଶିଳ୍ପୀର ଛନ୍ଦାୟିତ ସୁର ଲହରୀରେ । ତେଣୁ ସମସ୍ତଙ୍କର ସାମୂହିକ ପ୍ରଚେଷ୍ଟା ରହିଛି ସଫଳ ଗୀତଟିଏ ପାଇଁ । ହେଲେ ଗୀତର ପ୍ରଥମ ମୂଳଦୁଆ ଗୀତିକବି ହିଁ ପକାଇଥାଆନ୍ତି । ଗୀତି କବିତା ସୁରର ସ୍ପର୍ଶରେ ଗୀତରେ ରୂପାନ୍ତରିତ ହୁଏ ।

ମନେ ଅଛି - ଗୀତଟିଏ ଲେଖିବା, ସୁର କରିବା, ବାଦ୍ୟରେ ସଜେଇବା ଏବଂ ଗାଇବା ପାଇଁ ବିତିଛି ପ୍ରଥମ ଗୀତି କବି ଜୀବନରେ କେତେ ସନ୍ଧ୍ୟା, କେତେ ସକାଳ ଓ କେତେ ବିନିଦ୍ର ରଜନୀ । ସଂଯୋଗର ସ୍ଥଳ ହେଲା କଟକ ଆକାଶବାଣୀ, କଳା ବିକାଶ କେନ୍ଦ୍ର, ନ୍ୟାସନାଲ ମ୍ୟୁଜିକ୍ ଆସୋସିଏସନ୍ ଇତ୍ୟାଦି । ସାଥୀ ହେଲେ ଆକାଶବାଣୀ କଟକର ସେତେବେଳର କେନ୍ଦ୍ର ନିର୍ଦ୍ଦେଶକ ପି.ଭି.କୃଷ୍ଣମୂର୍ତ୍ତି, ସଙ୍ଗୀତ ସୁଧାକର ବାଳକୃଷ୍ଣ ଦାଶ, ଭୁବନେଶ୍ୱର ମିଶ୍ର, ରଘୁନାଥ ପାଣିଗ୍ରାହୀ, ଉପେନ୍ଦ୍ର କୁମାର, ହରି ପ୍ରସାଦ ଚୌରାସିଆ, ଶ୍ରୀଚନ୍ଦ୍ର ପଟ୍ଟନାୟକ, ଅକ୍ଷୟ ମହାନ୍ତି, ମହମ୍ମଦ ସିକନ୍ଦର ଆଲାମ, .ଶ୍ୟାମାମଣି ଦେବୀ, କଲ୍ୟାଣୀ ମୁଖାର୍ଜୀ, ନନ୍ଦିତା ପାଲିତ ଇତ୍ୟାଦି ସଙ୍ଗୀତ ନିର୍ଦ୍ଦେଶକ, ସୁରକାର, ବାଦ୍ୟ ଶିଳ୍ପୀ ଓ କଣ୍ଠ ଶିଳ୍ପୀ ଗଣ । ସେମାନେ ସେକାଳର ବନ୍ଧୁ ।

# ଗୀତି ଚଇତାଳି

ସେଇ ବନ୍ଧୁ ଓ ପ୍ରତିଭାଦୀପ୍ତ ମହାରଥୀମାନଙ୍କ ମଧ୍ୟରୁ ଅନେକ ଆଜି ନାହାନ୍ତି । କେବଳ ମୁଁ ଅତୀତର ସ୍ମୃତି ସାଇତି ରଖିଛି ମନ ଭିତରେ । କାରଣ ମରମ ତଳେ ଅତୀତ ଯେ ମରେନା- କେବେ ବି ମରେନା - ଆଜି ବି ସଜୀବ । ଆଜି ବୟସର ଅପରାହ୍ନରେ ସେ ସବୁ ମନେ ପଡ଼େ । ସେମାନେ ବି ମନେ ପଡ଼ନ୍ତି । କାହିଁ ଗଲା ସେହି ହଜିଗଲା ଦିନ- ଅଭୁଲା ଅତୀତ । ତାହା ଆଜିର ଜୀବନରେ ସଜଳ ସ୍ମୃତି ମାତ୍ର ।

୧୯୫୫ରୁ ୧୯୬୫ ମସିହା । ଚାକିରି ଜୀବନର ପ୍ରଥମ ପାହାଚରେ ଦିନ ବିତେ ପେଷାରେ, ସରକାରୀ କାର୍ଯ୍ୟାଳୟରେ ଏବଂ ରାତି ବିତେ ନିଶାରେ କବି, ଶିଳ୍ପୀ, ବାଦ୍ୟକାର ଓ ସୁରକାରମାନଙ୍କ ଗହଣରେ । ସେତେବେଳର ପ୍ରଖ୍ୟାତ ଚଳଚ୍ଚିତ୍ର ଓ ଆକାଶବାଣୀର ସଙ୍ଗୀତମାନ ଥିଲା -

* ସାଗରେ ଅଧୀର ନୀଳ ତରଙ୍ଗ...
* ଏକଇ ମନରେ ଅନେକ ବାସନା...
* ଜୀବନ ଯମୁନାରେ ଜୁଆର ଉଠେରେ...
* ଚମ୍ପାକୁ ଲାଗିଛି ଡାହାଣୀ...
* ଗୁରୁବାରୀଲୋ ଗୁରୁବାରୀ...
* କଂସର ଘରଣୀ ପଦ୍ମାବତୀ ରାଣୀ... (ସାପୁଆ କେଳା)
* ମରମ ତଳେ ଅତୀତ ଯେ ମରେନା...
* ଜୀବନେ ସପନ ଯେତେ ସବୁ ସତ ହୁଏନା...
* ଜୋଛନା ଲୁଚନା ଦୂର ନୀଳ ଗଗନେ...

ଏହିପରି ସଂଖ୍ୟାତୀତ ଅନେକ ଗୀତ ।

ଗୀତଟିଏ ଆକାଶବାଣୀରେ ପ୍ରଚାରିତ ହେଲେ କେତେ ଯେ ଆନନ୍ଦ ଭରିଯାଏ ମନ ଗହନରେ, ତାହା ଭାଷାରେ ପ୍ରକାଶ କରିବା ସମ୍ଭବ ନୁହେଁ ।

୧୯୫୫ରୁ ଅଦ୍ୟାବଧି ବିଗତ ଅର୍ଦ୍ଧ ଶତାବ୍ଦୀରୁ ଊର୍ଦ୍ଧ୍ୱ ଏମିତି ନୀରବଚ୍ଛିନ୍ନ ଭାବରେ ଗଡ଼ି ଚାଲିଛି ଜୀବନ । ଗୀତି କବିତାର ଗଭୀର ଗର୍ଭରେ ବୁଡ଼ି ବୁଡ଼ି ସାଉଁଟିଛି କିଛି ଶାମୁକା । ସେଇ ଶାମୁକା ଗର୍ଭରେ ମୋତି ଅଛି କି ନା, ତାହା କହିବେ ମୋ ଗୀତି କବିତାର ପ୍ରିୟ ଶ୍ରୋତା ଓ ଦରଦୀ ପାଠକମାନେ ।

ତା'ପରେ ଏଇ ଗୀତି ଗ୍ରନ୍ଥ 'ଗୀତି ଚଇତାଳି' କଥା । 'ଗୀତି ଚଇତାଳି'ର ସବୁ କବିତା କେବଳ ଚଇତର ନୁହେଁ । ବୟସର ମଧୁବନରେ ଜୀବନର ବହୁ ଅଶ୍ଳୀଳ ଓ ଛବିଳ ଅନୁଭୂତି ମନକୁ ପୁଲକିତ କରେ- ଯାହା ଏଇ ଗୀତି କବିତାରେ ପ୍ରତିଫଳିତ ଏବଂ ଏହା ତା'ର ପରିପ୍ରକାଶ ମାତ୍ର । କେହି ଆଦରରେ ତୋଳି ନେଲେ ଖୁସି ହେବି ।

[illegible]

# ଗୀତି ବଇତାଳି

**ଆଦ୍ୟଛତ୍ର ସୂଚୀ** ପୃଷ୍ଠା





# ଗୀତି ଚଇତାଳି





# ଗୀତି ଚଇତାଳି

ଚୋରା ଚଇତ
ନିଏ ମନ ମୋହି ତ
ସ୍ମୃତିର ସାଗରେ ଭାସେ ସୁନା ବୋଇତ ॥

ସୁଲୁ ସୁଲୁ ସୁଲୁ ବହେ ଚଇତି ବାଆ
ଶିହରାଇ ଫୁଲ ତନୁ ଲଗାଏ ନିଆଁ
କଳି ପାଶେ ଅଳି ଗାଏ - ସୁର ଲଳିତ ॥

ସକାଳେ ସୁନେଲି ଖରା ଅଳପ ତାତି
ସଞ୍ଜରେ ରୂପା ଝରା ଜୋଛନା ରାତି
ଚୂତ ବନେ କୋକିଳର ଉଚ୍ଛୁଳା ଗୀତ ॥

ଚମ୍ପା ଚମେଲି ବାସେ ମନ ଉତଲା
ଆକାଶରେ ଭାସେ ନୀଳ ବଉଦ ମାଳା
ଏ ଲଗନେ ମନ ଖୋଜେ ମନର ମିତ ॥

# ଗୀତି ଚଇତାଳି

ହସର ହିଲ୍ଲୋଳେ
ରସର କଲ୍ଲୋଳେ
ଫଗୁଣ ଖେଳେ ଫୁଲ ହୋରି
ବହିଲା-ବହିଲା- ବହିଲା ଚୋରା ଚଇତାଳି ।।

ସଞ୍ଜେ ଅବକାଶେ
କୁଞ୍ଜେ ପ୍ରୀତି ରାସେ
କାହ୍ନୁ ହସି ଖେଳେ ଦୋଳି
ବହିଲା ଚୋରା ଚଇତାଳି ।।

ଲଳିତା ମୁଖେ ହସ
ବିଶାଖା ଡାକେ ଆସ
ବୃନ୍ଦା ଦିଏ କରତାଳି
ବହିଲା ଚୋରା ଚଇତାଳି ।।

ଗୋପନେ ଗୋପପୁରେ
ଗୀତିର ସୁଧା ଝରେ
ଗୋପୀଏ ପ୍ରୀତି ନିଉଛାଳି
ବହିଲା ଚୋରା ଚଇତାଳି ।।

# ଗୀତି ଚଇତାଳି

ଚମ୍ପକ ବନେ କମ୍ପନ୍ ତୋଳି
ଚାରୁ ଚଇତାଳି ବହେ
ପାଇ ତା' ପରଶ ଅଙ୍ଗ ଅବଶ
ମନମଥ ମନ ଦହେ ॥

ମମତା ମଦିର ମନ୍ଦ ସମୀର
ମହକରେ ଭରେ ମନ ମନ୍ଦିର
ପୁଷ୍ପିତ ତରୁ ପ୍ରୀତି ପଲ୍ଲବ
ପ୍ରେମୀ ଜନ ମନ ମୋହେ ॥

ବିରହ ବଂଶୀ ବିଜନେ ବିଳପେ
ଗୋଲାପି ଗୋଧୂଳି ଗୀତର ଆଳାପେ
କୁଞ୍ଜରେ ରାଈ କାତର କଣ୍ଠେ
କାହ୍ନୁ କାହାଣୀ କହେ ॥

ହସି ହସି କହେ ଫୁଲର ଫଗୁଣ
ମୋହନର ଆନ ନାମଟି ଦହନ
ଦେଖି ଦେଖି ରାଈ ଆସେ କହ୍ନାଇ
ଶିରେ ଶିଖୀ ଚୂଳ ଶୋହେ ॥

# ଗୀତି ଚଇତାଳି

ହସର ହିଲ୍ଲୋଳେ
ରସର କଲ୍ଲୋଳେ
ଫଗୁଣ ଖେଳେ ଫୁଲ ହୋରି
ବହିଲା-ବହିଲା- ବହିଲା ତୋରା ଚଇତାଳି ।।

ସଞ୍ଜେ ଅବକାଶେ
କୁଞ୍ଜେ ପ୍ରୀତି ରାସେ
କାହ୍ନୁ ହସି ଖେଳେ ଦୋଳି
ବହିଲା ତୋରା ଚଇତାଳି ।।

ଲଳିତା ମୁଖେ ହସ
ବିଶାଖା ଡାକେ ଆସ
ବୃନ୍ଦା ଦିଏ କରତାଳି
ବହିଲା ତୋରା ଚଇତାଳି ।।

ଗୋପନେ ଗୋପପୁରେ
ଗୀତିର ସୁଧା ଝରେ
ଗୋପୀଏ ପ୍ରୀତି ନିଉଛାଳି
ବହିଲା ତୋରା ଚଇତାଳି ।।

# ଗୀତି ଚଇତାଳି

ମଧୁ ମଳୟର
ଫଗୁଣ ହସୁଛି
ପ୍ରୀତି ବଳୟରେ
ଫୁଲ ନିଳୟରେ ॥

କୋକିଳ କୁହୁରେ
ଗୀତି ସୁରେ ସୁରେ
କାନନ ହସୁଛି
ପ୍ରୀତି ସୁଧା ଢାଳେ
ସହକାର କୋଳେ
ଶ୍ୟାମ ସୁଷମାରେ ॥

ବନ ବୀଥିକାରେ
ଭୁରୁ ଭୁରୁ ବାସ
ନୀଳ ନଭ ସାଜେ
ଅଜଣା ଫୁଲର
ବିତରେ ସମୀର
ମେଘ ମେଖଳାରେ ॥

ଗୁଞ୍ଜରେ ଅଳି
ଚୋରା ଚଇତାଳି
ଝୁମିଯାଏ ମନ
ହସି ଉଠେ କଳି
କରେ ନିଉଛାଳି
ଏ ମଧୁ ବେଳାରେ ॥

# ଗୀତି ଚଇତାଳି

ମୋ ଗୀତ ସିଏ ବୁଝେ
ମୋ' ଠାରୁ ବେଶୀ ବୁଝେ
ମୁଁ... ବୁଝେନା
ହେଲେ ବଡ଼ ନିରିଦୟ ସେଇ ଲଳନା
ପଚାରିଲେ କହେ ସିଏ - କିଛି ବୁଝେନା
ବୁଝି... ପାରେନା ।।

ସିଏ ଆସିଥିଲା ଦିନେ,
ଫୁଟିଲା ଗୋଲାପ ପରି - ମୋ ଜୀବନେ
ସିଏ ଗାଇଥିଲା ଗୀତ
ଫଗୁଣେ କୋକିଳ ପରି - ମୋ କାନନେ
ତା'କୁ ପଚାରିଲେ ସିଏ
ଓଠ ଓଲଟାଇ କହେ
ତୁମେ କିଏ - ମୁଁ କିଏ - ଗୀତ କିଏ
କିଛି... ଜାଣେନା ।।

କହିଥିଲା ଦିନେ ସିଏ
ମୋ ଗୀତେ ମୁଁ ସତ କହେ
ମୋ' ଗୀତକୁ ଭଲ ପାଇ
ମତେ ସିଏ ଭଲ ପାଏ
ବୁଝିଗଲି ମୁଁ ସିଏ- ଗୀତ ଶୁଣି ମିଛ କହେ
ସତ... କହେନା
ପ୍ରେମ ନାମ ଆଜି ତେଣୁ ଦେଲି ଛଳନା ।

# ଗୀତି ବଇତାଳି

ଅତୀତ ମୋ ପାଇଁ ଏକ
ତାରା ଭରା, ନୀଳ ଜହ୍ନ ରାତି
ଅତୀତ ମୋ ପାଇଁ ହେଲା
କିଛି ସ୍ମୃତି କିଛି ଅନୁଭୂତି ।।

ଅତୀତ ମୋ ସୁନା ଝରା
ସକାଳର ଫୁଟିଲା ଗୋଲାପ
ଅତୀତ ମୋ ଅପାଶୋରା
ମଧୁଝରା ଗୀତର ଆଳାପ
ଜିତି ପୁଣି ହାରିଯିବା
ମୋ ଅତୀତ ପୀରତିର ରୀତି ।।

ଅତୀତ ମୋ ପାଇଁ ଏକ
ଭୀରୁ ହିଆ ଦହନ ଦିପାଳୀ
ଅତୀତ ମୋ ନୀରବରେ
ଝରିଯିବା ସକାଳ ଶେଫାଳୀ
ସଉରଭେ ଆମୋଦିତ
ହୋଇଯାଏ ସାରା ଦିନ ବିତି ।।

ମୋ ଅତୀତ ମୋର ମିତ
ଫୁଲ ଝରା ଫଗୁଣର ଗୀତ
ଜୀବନର ସନ୍ଧ୍ୟାରେ
ବେଳେ ବେଳେ ହୁଏ ଉପଗତ
କରି ତା'କୁ ଜପା ମାଳି
ପୀରତି ମୋ ହୁଏ ନାହିଁ ଇତି ।।

# ଗୀତି ଚଇତାଳି

ବିଳାସୀ ମନ ମୋ
ବିଳାପ କରୁଛି
ବିଗତ ଅତୀତ ପାଇଁ
ବସି ମୁଁ ଝୁରୁଛି ସେଇ ବାଳିକାକୁ
ଗଲା ଯେ ବିରହ ଦେଇ ।।

ସଜଡା ଜୀବନ ଉଜାଡି ଦେଲା ସେ
ଭରିଗଲା ନୀରବତା
କବିତା ଲେଖିବା ଇତି ହେଲା ମୋର
ଗୀତ ସବୁ ହେଲା କଥା
ଫଗୁଣ ଫୁଲର ସୁରଭି ହଜିଛି
ଜଳୁଛି ଜୀବନ୍ ଜୁଇ ।।

ବେଦନା ବିଧୁର ବୁକୁର ବୀଣାରେ
ବିଳାପ ରାଗିଣୀ ବାଜେ
ସାହାନାଇ ସୁରେ ଆଉ କାହା ପୁରେ
ମୋ ପ୍ରିୟା ବାସର ସାଜେ
ପର କରି ମତେ ଯାଇଛି ଆଜି ସେ
ଆଉ କାହା ବଧୂ ହୋଇ ।।

# ଗୀତି ଚଇତାଳି

ଅନେକ କଥା ହୁଏ ନା କହି
ଅନେକ ଗୀତ ହୁଏନା ଗାଇ
ଗାଇବା ପାଇଁ କହିବା ପାଇଁ
ରହିଲା ଯଦି ରହି ତ ଯାଉ
ଫେରିବା ଯେବେ ପୁଣି ମରତେ
ଫୁଲ ଫଗୁଣେ ଶୀତ ଶରତେ
ଆର ଜନମେ କହିବା ଆମେ
ଶୁଣିବା ବସି କୋଇଲି କୁହୁ ।।

ଦ୍ରାକ୍ଷା ରସ ମଦିରା ପିଇ
ସାକୀ ସାଥିରେ ରାତି ବିତାଇ
କହିବା କଥା ମମତା ବୋଳା
ରସି ରସାଇ ବିତିବ ବେଳା
ଛନ୍ଦଭରା କବିତା ଲେଖା
ଯେତିକି ହେଲା ସେତିକି ଥାଉ ।।

# ଗୀତି ଚଇତାଳି

ଶିଶିର ଝରାଇ ସକାଳ ସରିଛି
ସଙ୍ଗେ ଆସିଛି ଶୀତ
ମଉଳା ଲଗନେ ଗାଏ ଆନମନେ
ଗଙ୍ଗଶିଉଳି ଗୀତ ।।

ତା' ସେନେହ ସବୁ ମତେ ଦେଇ ସାରି
ନିଃସ୍ୱ ହୋଇଛି ଯେଉଁ ବର ନାରୀ
ତାହାକୁ ଜୀବନେ କେବେହେଲେ ଦିନେ
ଡାକି ପାରିଲିନି ମିତ ।।

ଭଲ ପାଇବାର ସେଇ ଅଙ୍କୁର
ଦ୍ରୁମ ହୋଇ କରି ଛାୟା ସୁଶୀତଳ
ଝରିଗଲା ଯିଏ ତା' ପାଇଁ ଭାଳି
ବେଦନା ବ୍ୟଥିତ ଚିତ୍ତ ।।

ଅନୁଶୋଚନାର ଅନ୍ଧାରେ ଆଜି
ବଞ୍ଚିବା ପଥ ପାଏ ନାହିଁ ଖୋଜି
ଜୀବନ ମଞ୍ଚ ତାହା ପରି ଆଉ
କରିବ କେ ଆଲୋକିତ ।।



# ଗୀତି ଚଇତାଳି

ସୁରରେ... ସୁରରେ...
ଗୀତରେ... ଗୀତରେ...
ଗୀତ ଡାକେ ମତେ ମିତରେ ମିତରେ ॥

ଡାକେ ଯେ ସରାଗେ ଆଦରେ ସୋହାଗେ
ଫୁଲର ପରାଗେ ନବ ଅନୁରାଗେ
ଶିହରେ ଅଧୀରେ ଶୀତଳ ସମୀରେ
ବିଳାସୀ ବକୁଳ ବନର ବୀଥିରେ ॥

ପରାଣେ ତାହାର ପ୍ରୀତି ଭିଜା ରାତି
ଆଦରେ ଜଡାଏ ଡାକି ସାଥୀ ସାଥୀ
ଯେନେହ ଢାଳେ ସେ ନିଜନ ନିଶିରେ
ଝରାଇ ମୁକୁତା ଶୀତଳ ଶିଶିରେ ॥



# ଗୀତି ଚଇତାଳି

ଦୁଃଖ ମୋ' ମିତଟିଏ
ଯେବେ ଗାଏ ଗୀତଟିଏ
ସେ ଗୀତରେ ମିଶିଥାଏ ଦରଦର ସୁରଟିଏ ॥

ସେ ଦରଦ ମୋ ଗାଆଁର ଗହଳିଆ ତୋଟା ମାଳ
ଭଇଁଚ ବେତର ବଣ ପାଚିଗଲେ ମିଠା ଫଳ
ଧବଳ ହଂସ ମାଳ ସରୋବର ନୀଳ ଜଳ
ମୟୂର କଣ୍ଠୀ ମେଘ ଗୋଠ ଫେରା ଧେନୁ ପଲ
ନୀଳ କଇଁ ମନ କଥା
ଗୀତି ସୁରେ ମତେ କହେ ॥

ଫଗୁଣର ଫୁଲ ସଭା ଡାହୁକ କୋକିଳ ଗୀତ
ବେଦନାର ବଇଶାଖୀ ଅବା ଫୁଲ ଫୁଟା ଶୀତ
ମୋ ଜୀବନେ ବଧୂ ବେଶେ ଦୁଃଖର ଆଗମନ
ଦୂର ବଇଁଶୀର ସୁର ତା'ର ମୃଦୁ ଅଳାପନ
ସବୁ ମିଶି ଲାଗେ ସିଏ
ସେନେହୀ ମଣିଷଟିଏ ॥



# ଗୀତି ବଇତାଳି

ହସି ହସି ଏତିକି ମୁଁ ଜାଣିଛି
ହସିବାର ଆନ ନାମ ଜୀବନ
ହସ ଯେଣୁ କରିପାରେ ଏକାକୀ
ମନ ତଳ ବେଦନାକୁ ଗୋପନ ॥

ଯନ୍ତ୍ରଣା ଭରା ଏହି ଦୁନିଆଁ
ଜନମିଲେ ଦିନେ ଅଛି ମରଣ
ଜୀବନର ମୃତ୍ୟୁର ମଝିରେ
ଆଉ ଯାହା ସେ'ତ ଖାଲି ଦହନ
ବଞ୍ଚିବା ବଞ୍ଚନା ସହିବା
ତଥାପି ଦେଖିବା କିଛି ସପନ ॥

ଆଖି ଲୁହ ପିଇ ପିଇ ଲେଖିବା
କୋରା କାଗଜରେ କିଛି କବିତା
ବହୁ ରୂପେ ଅଭିନୟ କରିବା
କେବେ ହେବା କୃଷ୍ଣ କି ଲଳିତା
ଶେଷ କଥା ବୁଝିଛି ଏତିକି
ଜୀବନର ମାନେ ହେଲା ଜଳନ ॥

# ଗୀତି ଚଇତାଳି

ମୁଁ ହସିଲେ - ସିଏ ହସି ଦିଏ
ଆମ ମନ ବଗିଚାରେ
ଅସୁମାରୀ ଫୁଲ ଫୁଟିଯାଏ ॥

ମୁଁ ଝୁରିଲେ ତା' ଆଖିରେ ଲୁହର ଝରଣା
କ୍ଷଣିକରେ କରିଦିଏ ମତେ ବାଟ ବଣା
ଦୁଃଖର ଜୁଆରରେ ସପନ ମୋ ଦୂରେ ଭାସିଯାଏ ॥

ଚଇତି ସକାଳେ ଲେଖା ଗୀତଟିଏ ପରି
ଦୂରେ ଗଲେ ସିଏ ବସେ ମନକୁ ଆବୋରି
ତାହାରି ମମତା ପ୍ରୀତି ମନ ତଳେ ସପନ ଦେଖାଏ ॥

ଜୀବନର ନଈ ଧାରେ ନାଆ ବାହି ବାହି
କ୍ଳାନ୍ତିରେ ଭାଳି ତାକୁ ଯେବେ ପଡ଼େ ଶୋଇ
ନିରିଜନେ ବସି ପାଶେ କେଶ ମୋର ସାଉଳାଇ ଦିଏ ॥



# ଗୀତି ଚଉତାଳି

ମୁକ୍ତି ମୋ ଲୋଡା ନାହିଁ    ଏ ଜୀବନ ପରେ ମୁହିଁ
ଧରା କୋଳେ ପୁଣି ଫେରି ଆସିବି
ଆଜି ଭଳି ସପନ ମୁଁ ଦେଖିବି
ଆଜି ଭଳି କବିତା ମୁଁ ଲେଖିବି
ଶାନ୍ତ ଏ ପୃଥିବୀର    କାନ୍ତ କୋମଳ ଛବି
କବିତାରେ ସୁର ଦେଇ ଗାଇବି ॥

ଜଳେ ଫୁଟିଥିବ ନୀଳ କଇଁ
କୂଳେ ବସି ଥିବି ତାକୁ ଚାହିଁ
ଜୋଛନା ଜୁଆରେ ଭାସି    କଳି ମେଳେ ହସି ହସି
ଫୁଲ ଫୁଟିବାର ବେଳା ଗଣିବି ॥

ସ୍ମୃତି ଭରା ଶ୍ରାବଣର ନଈ
କୁଳୁ ଗୀତି ଗାଇ ଯିବ ବହି
ଭାଦରରେ ଝର ଝର    ଝରୁଥିବ ବାରି ଧାର
ଚପଳା ଚମକେ ଥରି ଉଠିବି ॥

ମଳୟର ହିଲ୍ଲୋଳେ ମୁହିଁ
ପଦ୍ମ ବନର ମଧୁ ପିଇ
ବାନ୍ଧବୀ ବାହୁ ପାଶେ    ଯଉବନ ଉଲ୍ଲାସେ
ମିଳନ ମାଙ୍ଗଳିକ ଗାଇବି ॥

# ଗୀତି ଚଉତାଳି

ବେଦନାର ଗୀତି ସବୁଠୁଁ ମଧୁର ତା'ର ସୁର ଝଙ୍କାର
ଦରଦୀ ମନରେ ଲେଖି ଲେଖିଯାଏ ଅନୁପମ
ସ୍ୱାକ୍ଷର ।।

ଭଲ ଲାଗିବାର ଲତାରେ ଫୁଟିଲେ
ଭଲ ପାଇବାର ଫୁଲ,
ଆଶ୍ରୟ ମାଗେ ବୃକ୍ଷ ବୁକୁରେ
ଘେରି ଲତା ବାହୁ ଡୋର
ଅନ୍ତଃସଲୀଳା ନଦୀ ସମ ବହେ ବୁକେ ପ୍ରୀତି ନିର୍ଝର ।।

ପ୍ରୀତିର ପରଶେ ହୁଏ ସୁଶୀତଳ
ଜୀବନ ଯଜ୍ଞ ବେଦୀ
ଝରି ଝରି ଆସେ ନିଜନ ନିଶୀଥେ
କବିତାର କୌମୁଦୀ
ସ୍ମୃତିର ସହର ମନ୍ଥନ କରେ ଅଶ୍ରୁର ସମ୍ଭାର ।।

# ଗୀତି ଚଇତାଳି

ଶବ୍ଦର ଶୁଆମାନେ ମୋ ମନର ଆକାଶରେ
ଉଡୁଥିଲେ ଗାଇ ପ୍ରିୟା ନାମ
ସେନେହର ଶିକୁଳିରେ ସେ ନାମକୁ ଗୀତି ସୁରେ
ଛନ୍ଦିବା ଥିଲା ମୋର କାମ ॥

ମୋ ଓଠର ଉପକୂଳେ ମିଠା ମିଠା ମଉସୁମୀ
ବହିଗଲା ଅତୀତର ସ୍ମୃତିଲିପି ଚୁମି ଚୁମି
ମୋ ଚିଠି ଚମ୍ପାକଳି ସାଜିଲା ତା'ର କବରୀ
ସଯତନେ କରି କୋଟିକମ ॥

କମଳ ବନରେ ସେଇ ବନହଂସୀ ବାଳିକା
ପଲକେ ପୁଲକ ଭରି ଫୁଟାଇ ପ୍ରୀତି କଳିକା
ମୋ ହୃଦୟ ସରୋବରେ ତା' ନୂପୁର ସୁରେ ସୁରେ
ବାଜୁଥିଲା ଝୁମ୍ ଝୁମ୍ ଝୁମ୍ ।

# ଗୀତି ଚଇତାଳି

ହେ ମୋର... ପ୍ରୀତିର ପୁରୁଷ
ଶୋଷର ସାଗର ତୁମେ ସ୍ମୃତିର ପାଉଁଶ
ରାତି ଶେଷ ସକାଳର ସପନ ବିଳାସ ।।

ବେଦରଦୀ ରାତିର ମୁଁ ଦରଦୀ ପ୍ରେମିକା
ଏ ରାତିରେ ତୁମ ପାଇଁ ଝୁରେ ଏକା ଏକା
ତାରା ଭରା ଜହ୍ନହୀନ
ହେଲେ ମୋ ଆକାଶ ।।

ନଉକାହୀନ ମୋ ନଈ ଲୁହର ସାଗରେ
ଜୀବନ ଆକୁଳେ ଭାସେ ଯାତନା ଜୁଆରେ
ମମତାର ମଧୁ ଝରେ
ସରେ ମୋ ବୟସ ।।

ବଧୂ ହେବା ବାସନା ମୋ ବିରହେ ମଉଳେ
ଗଙ୍ଗଶିଉଳି ସମ ସକାଳେ ଝାଉଁଳେ
ଭାଳି ଭାଳି ସତେ କିବା
ସରିବ ଆୟୁଷ ।।

# ଗୀତି ଚଇତାଳି

ସପନ ତ କେବେ ସତ ହୁଏ ନାହିଁ
ଏ କଥା କିଏ ନ ଜାଣିଛି
ତଥାପି ମଣିଷ ସପନ ଦେଖୁଛି
ସପନକୁ ନେଇ ବଞ୍ଚିଛି ॥

ଜୀବନର ଠାରୁ ସପନକୁ କେବେ
ହୁଏ ନା ଅଲଗା କରି
ସପନ ସରିଲେ ଜୀବନ ରହେନା
ଏ ମଣିଷ ଯାଏ ମରି
ସପନ ଜୀବନେ ଶୀତଳ ସେନେହ
ବରଷା ଅସରା ଢ଼ାଳିଛି ॥

ଚଉଦିଗେ ଆଜି ଘେରିଛି ମୋହରି
ବୟସର ବହଳତା
କଥା ତେଣୁ ଆଉ ଭଲ ଲାଗେ ନାହିଁ
ଭଲ ଲାଗେ ନୀରବତା
ନୀରବ ପହରେ ନିଜନ ମନରେ
ସପନ ରାଜୁତି ଚାଲିଛି ॥



# ଗୀତି ଚଇତାଳି



ଜଉମୁଦ ଦିଆ ଜୀବନରେ ମୋର
ଉଙ୍କି ମାରୁଛି ଅତୀତ
ସ୍ମୃତିର ଶିଶିର ଝରି ମନ ତଳ
କରୁଛି ବେଦନା ମଥିତ ॥



ବିଜନ ବେଳାରେ ବିଳାସୀ ମୋ ସାଥୀ
ସପନରେ ଆସି ଖେଳେ ଯାଏ ମାତି
ଆନ ଗତି ନାହିଁ ଅପଲକେ ତାକୁ
ଅନାଇଁ ରହିବା ବ୍ୟତୀତ ॥



କେତେ କମନୀୟ ସେଇ କଳପନା
କପୋତ କପୋତୀ ନୀତ ସରଜନା
ଧୂଳି ଝଡେ ଭାଜି, ଗଲା ଶେଷେ ହଜି
କରେ ଖାଲି ମନ ବ୍ୟଥିତ ॥















# ଗୀତି ଚଉତାଳି

ଜାଣେନା କିପରି ପୀରତି କୀରତି ହେଲା
ଥିଲି ଦୀନ ହୀନ
ଏ ପୀରତି ମତେ ସମ୍ରାଟ କରିଦେଲା ॥

ପ୍ରୀତି-ଗୀତି ଗାଇ 'କପିଳା'ରୁ ମୁହିଁ
ହେଲି ରାଜା କପିଳେନ୍ଦ୍ର
ସୁନୟନା ସ୍ନେହ ପାଇ ତା' ଆକାଶେ
ସାଜିଲି ପୂର୍ଣ୍ଣଚନ୍ଦ୍ର
ଧରିତ୍ରୀ ବୁକୁ
ନୀଳ ଜୋଛନାରେ ନିତି ସ୍ନାନ କରୁଥିଲା ॥

ଜାଣି ତ ନ ଥିଲି ମମତା ପ୍ରୀତିର
ମୂଲ୍ୟ ଏମିତି ହୁଏ
ଅକିଞ୍ଚନର ମୂଲ୍ୟ ବଦଳି
କାଞ୍ଚନ ହୋଇଯାଏ
ଜୀବନେ ମୋ' ପରି
ଭାଗ୍ୟହୀନର ଭାଗ୍ୟ ଓଲଟି ଗଲା ॥

# ଗୀତି ଚଇତାଳି

ଜଳୁଛି ଜୀବନ ସୂର୍ଯ୍ୟ ତେଜରେ
ନିର୍ମମ ବଇଶାଖେ
ଶିଳ୍ପୀର ତୂଳି କବିର ଲେଖନୀ
ସେ କରୁଣ ଛବି ଲେଖେ ॥

ଶ୍ୟାମଳ କେଦାର ହେଲାଣି ଧୂସର ପାଦପ ପତ୍ରହୀନ
ଦିଗ ଦିଗନ୍ତ ଆଜି ଅଶାନ୍ତ ଅସ୍ଥିର ତନୁ ମନ
ବାହୁନେ ବିଜନେ ବନର କପୋତୀ
ଶୁଷ୍କ ତରୁର ଶାଖେ ॥

ବର୍ଷା ନାଚିବ ଧରଣୀ ହସିବ ଆସିବ କେବେ ସେ ଦିନ
କେବେ ସେ ଲଭିବ ସଜଳ ବରଷା ନିବିଡ ଆଲିଙ୍ଗନ
ଆଦ୍ୟ ଆଷାଢ଼ ବାରିଧାରା ଦେଖି
ହସିବ ସେ ମନ ସୁଖେ ॥

ଓସ୍ତ ଉହାଡେ ଅସ୍ତ ଗୋଧୂଳି ସାଜିଦେବ ପ୍ରୀତି କୁଞ୍ଜ
ମନ୍ଦ ମରୁତେ ଗନ୍ଧ ବକୁଳ ବାସ ବିତରିବ ସଞ୍ଜ
ମାଟି ମଟାଳର ଛଇଳ ଛାତିରେ
ସବୁଜ ସ୍ୱପ୍ନ ଦେଖେ ॥

## ଗୀତି ଚଇତାଳି

ଏମିତି ହୁଏ
ହଁ... ହଁ... ଏମିତି ହୁଏ
ଜାଣି ପାରେନା- କେହି ଜାଣି ନ ଥାଏ
ବୁଝି ପାରେନା- କେହି ବୁଝି ନ ଥାଏ
କହି ପାରେନା- କେହି କହି ନ ଥାଏ
କାହିଁକି ହୁଏ
ଅବା କେମିତି ହୁଏ ।।

ଷଡ ଋତୁ ପରେ ଆସେ ସେ ଋତୁଟିଏ
ଛାତି ଭିତରଟା ଖାଲି କରତି ଦିଏ
ଆଖି ତଳେ ଭରି ଦିଏ ମିଠା ସପନ
ଯେତେବେଳେ ଆସେ ସେଇ ମଧୁ ଲଗନ
ହଁ ହଁ ଏମିତି ହୁଏ
ପ୍ରେମ ଏମିତି ହୁଏ ।।

ଆପେ ଆପେ ଲେଖନୀରୁ ଝରେ କବିତା
ଭୁରୁ ଭୁରୁ ବାସେ ତା'ର କି ମାଦକତା
ରୂପ କଥା ରାଇଜକୁ ମନ ଯେ ଧାଏଁ
ସ୍ୱପ୍ନ ବିଭୋର ମନେ ଉଦାସୀ ଛାଏ
ହଁ... ହଁ... ଏମିତି ହୁଏ
ପ୍ରେମ ଏମିତି ହୁଏ ।।



# ଗୀତି ଚଇତାଳି

ଶୀତ ଏକ ଇରାନୀ କିଶୋରୀ
ତା' ପୀରତି ପାରୁନି ପାଶୋରି
ଗଭାରେ ଗୋଲାପ ଖୋଷା
ଗୋଲାପୀ ତା' ରୂପର ମାଧୁରୀ ॥

ଥର ଥର ଅପଘନ ମମତାରେ ଭରା ମନ
ତନୁ ମନ ଟୀରେ ଟୀରେ ତୋଳେ ଖାଲି ଶିହରଣ
ସୋରିଷ ଫୁଲର କ୍ଷେତେ
ଫୁଟି ଉଠେ ରୂପ ଯାଦୁକରୀ ॥

ଅଳସ ବିଳାସ ଶେଯେ ନିବିଡ ତା' ବନ୍ଧନ
ମୁଗ୍ଧ ସେ ଅନୁଭବ ମରମରେ ସ୍ପନ୍ଦନ
ଲେଖନୀରେ ସିଏ ଭରେ
କବିତାର ପ୍ରୀତି ମାଧୁକରୀ ॥

# ଗୀତି ଚଇତାଳି

ମାନ କରିଛି ମଉନାବତୀ ମେଘ
ମରମ ତଳେ ମଉସୁମୀର ଛୁଆଁ
ବାହାରେ ଝରେ ବରଷା ଝର ଝର
ବୁକୁରେ ଜଳେ ଯଉବନର ନିଆଁ ।।

ଝାଉଁ ବନର ବୀଥିରେ ବାଜେ ବୟସ ମଧୁ ବଂଶୀ
ତମାଳ ମାଳ ତନୁରେ ଝୁରେ ବ୍ୟଥାର ବନହଂସୀ
ପୀରତି ସବୁ କୀରତି ହୋଇଯାଏ
ଅତୀତ କଥା- ପରାଣ ଦିଆ ନିଆ ।।

ଆଜି ବି ବାସେ ବିଳାସୀ ମନେ ରାତି ରଜନୀଗନ୍ଧା
ଆଜି ବି ହସେ ମେଘ ଉହାଡେ ମାନସୀ ମଧୁଛନ୍ଦା
ପରାଣ ହୁଏ ପୁଲକେ ପୁଲକିତ
ପ୍ରୀତି ବେଦୀରେ ଜୀବନ ହୁଏ ସ୍ୱାହା ।।



# ଗୀତି ଚଇତାଳି

ବିରହୀ ଜନଙ୍କୁ ବରଷା କରୁଛି ବ୍ୟାକୁଳ
ବିଳାସୀ ବିଶାଖା କୁଞ୍ଜେ ବିଜନେ
ବନମାଳୀ ପାଇଁ ଆକୁଳ ॥

ଲଳିତା ଜଳୁଛି ସଳିତାର ସମ
ନୟନେ ଲୁହର ଅସରା
ଗୋଧନ ଲେଉଟା ଗୋଧୂଳି ବେଳାରେ
ଗୋପାଳ ବଇଁଶୀ ବେସୁରା
କେଳି କଦମ୍ବ ଶାଖାରେ ଉଡେନା
କାହ୍ନୁର ନୀଳ ଦୁକୂଳ ॥

ମଥୁରାରେ ରହି ମଧୁର ମିଛରେ
ମୋହନ ଦହୁଛି ମରମ
ପୀରତି ସାଧିକା ପିଆସୀ ରାଧିକା
ନିନ୍ଦୁଛି ଖାଲି କରମ
ଆଶାରେ ତା' ପଥ ଅନାଇଁ ସତତ
ବେଦନା ବ୍ୟଥିତ ଗୋକୁଳ ॥

# ଗୀତି ଚଉତାଳି

ମେଘ ମହ୍ଲାର ରାଗିଣୀ ଉଛୁଳେ
ଯକ୍ଷ ପ୍ରିୟାଂର କକ୍ଷରେ
ବର୍ଷା ବିରହ ବଜ୍ରା ଆଘାତେ
ବିଳାସୀ ବଧୂର ବକ୍ଷରେ ।।

ନୟନରୁ ଝରେ ଲୁହର ରୁଧିର
ବିଚ୍ଛେଦ କରେ ବାଳାରେ ଅଧୀର
ବେଦନାରେ କରେ ପ୍ରୀତିର ସାଧନା
କାନ୍ତ ମିଳନ ଲକ୍ଷ୍ୟରେ ।।

ଧାରା ଶ୍ରାବଣର ପ୍ରୀତି ପାରବଣ
ପ୍ରିୟାର ବିରହେ ହେଲା ଅକାରଣ
କ୍ରନ୍ଦନରତା ବିରହୀ ବନିତା
କଣ୍ଠୁ ନ ଫୁଟେ ବାକ୍ୟରେ ।।

ଆସିବ କେବେ ସେ ଝରା କାର୍ତ୍ତିକ
ପୁଣି ପୀରତିର ହେବ ଅଭିଷେକ
ନବ କାମିନୀର ବିତିବ ଯାମିନୀ
ନାୟକ ନିବିଡ ସଖ୍ୟରେ ।।



# ଗୀତି ଚଇତାଳି

ଶୀତଳ ପବନ ବହେ ସନ ସନ
ଶିହରାଇ ବନ ବୀଥିକା
ଏ ଘନ କାଳରେ ବସି ମୁଁ ଲେଖୁଛି
ମେଘ ମଙ୍ଗଳ ଗୀତିକା ।।

ଆକାଶରେ ବାଜେ ମେଘ ଦୁନ୍ଦୁଭି
ବନେ ବନେ ଭାସେ ଫୁଲର ସୁରଭି
ନୀଳ ସାଗରରେ ମିଶିବା ପାଇଁ କି
ନଦୀ ସାଜେ ଅଭିସାରିକା ।।

ସାଥୀ ସ୍ମୃତି ନେଇ ରାତି ଯାଏ ପାହି
ଆସିବା ଆଶାରେ ପଥ ଚାହିଁ ଚାହିଁ
ନୀରସ ବୁକୁ ମୋ ସରସ କରିବ
ଫୁଟାଇ ପ୍ରୀତିର କଳିକା ।।

ଭୁରୁ ଭୁଗୋଳରେ ଭୀରୁ ଚାହାଣୀର
ଭରସା ଖୋଜୁଛି କଥା କାହାଣୀର
କଜଳ କେଶୀ ସେ ସଜଳ ନୟନା
ବରଷା ମୋ ପ୍ରୀତି ନାୟିକା ।।

# ଗୀତି ଚଇତାଳି

ଝରି ଝରି ଯାଏ ସଜଳ ଜଳଦ
ଶ୍ୟାମଳ ସେନେହ ଧାରା
ପ୍ରୀତି ବରଷଣେ ଶୀତଳ ସମୀରେ
ଧନ୍ୟ ହୋଇଛି ଧରା ॥

ଫୁଟେ କଦମ୍ବ ଜାଗେ ରୋମାଞ୍ଚ
ଫୁଲେ ଫୁଲେ ଭରା ମନ ମାଳଞ୍ଚ
ନଦୀ ନିର୍ଝର କୁଳୁ ଗୀତି ସୁରେ
ସଙ୍ଗୀତ ସୁଧା ଭରା ॥

ବେପଥୁମତୀ ସେ ଶ୍ୟାମଳୀ କିଶୋରୀ
ତନୁ ତଟେ ଜାଳି ରୂପର ଦିପାଳୀ
ଶ୍ୟାମ ପ୍ରାନ୍ତରେ ନାଚି ଅଭିସାରେ
ହୋଇଛି ଆତ୍ମହରା ॥

# ଗୀତି ଚଇତାଳି

ଶୁଣ ଶୁଣ ସାଥି ସାହାନାଇ ସୁରେ
ଶ୍ରାବଣୀର ସା-ରେ-ଗା-ମା
ଗାଇଯାଏ କିଏ ମେଘ ମହ୍ଲାରେ
ସୁନ୍ଦରୀ ଅନୁପମା ॥

ମଉସୁମୀ ମେଘ ମୋହିନୀ ମାୟାରେ
ମଟାଳ ମାଟିରେ ମମତା ଶିହରେ
ଶୃଙ୍ଗାର ରଚେ ଶ୍ୟାମଳୀ ଧରଣୀ
ସୁନ୍ଦରୀ ରାଜ ଜେମା ॥

ନିରଞ୍ଜନାର ନୀଳ ବେଣୀ ଆଜି
ରଙ୍ଗିନ ମାଟି ରଙ୍ଗେ
ମିଳନ ଆଶାରେ ଧାଏଁ ଖରତରେ
ମିଶିବ ସାଗର ସଙ୍ଗେ
ସଙ୍ଗମ ହେଲା ସବୁବେଳେ
ପ୍ରୀତି ପର୍ବର ଶେଷ ସୀମା ॥

# ଗୀତି ଚଇତାଳି

ଓଦା ଓଦା ଏଇ ଅଗିଣ ଆକାଶ
ଘନ ଘନ ମାରେ ବିଜୁଳି
କଜଳ ବରଣା ମେଘର ଓଠରୁ
ମଦିରା ପଡୁଛି ଉଛୁଳି ।।

ସେ ମଦିରା ପିଇ କେତେ ହେଲେ କବି
ଗଳ୍ପ ଲେଖିଲେ କେତେ
କେତେ ଗୀତିକାର ସେ ଗୀତ ମାଧୁରୀ
ରୂପ ଦେଲେ ସୁରେ ଗୀତେ
ସେ ମେଘର ରୂପ ଦେବାକୁ ଶିଳ୍ପୀ
ତୂଳିକା ଉଠିଲା ଶିହରି ।।

ସେ ଗୀତର ତାଳେ ଉଠିଲା ଆକାଶେ
ମେଘ ଦୁନ୍ଦୁଭି ବାଜି
ଧରାର ଶ୍ୟାମଳ କିଶୋରୀ ନାଚିଲା
ସଜ ଫୁଲେ ଗଭା ସାଜି
ରସରାଜ ଆଜି ରସରେ ରଚିଲା
ଗୀତେ ସେଇ ରୂପ ମାଧୁରୀ ।।

# ଗୀତି ଚଇତାଳି

ଦୁନିଆଁରୁ କିଛି ନ ପାଇ ଆଜି ମୁଁ ମେଘରୁ ଖୋଜୁଛି ମମତା
ଲେଖନୀରୁ ମୋର ଝରି ଝରି ଯାଏ
ମେଘ ମଙ୍ଗଳ କବିତା ॥

ସାଥୀ ବେଦରଦୀ ମେଘ ତ ଦରଦୀ
ମନର ଦରଦ ବୁଝେ
ନୀର ଢ଼ାଳି ଢ଼ାଳି ଧୂସର ଧରାରେ '
ପୀରତିର ଋଣ ସୁଝେ
ଭଲ ପାଇବାର ବେଦନାର ମାନେ
ବୁଝିଲାନି ସିନା ବନିତା ॥

ଶ୍ରାବଣର ମେଘ ମେଦୁର ଆକାଶେ
ଅଳସୀ ମେଘର ବିଳାସ
ବିଜନ ବେଳାରେ ନିଜନ କୁଟୀରେ
ବିରହୀ ମନ ମୋ ଉଦାସ
ପୀରତିରେ କେତେ ପରମାଦ ଘଟେ
ଜାଣେ ଏକା ସେଇ ଲଳିତା ॥

ସହି ହୁଏ ନାହିଁ କହି ହୁଏ ନାହିଁ
କିଏ ବା ବୁଝିବ ଦରଦ
ବୁଝିଥିଲେ ଅବା ବୁଝିଥିବ ସେଇ
ନୀଳ ଆକାଶର ବଉଦ
ଜଳାଇ ରଖିବି କେତେ କାଳ ଅବା
ଜୀବନର ଶେଷ ସଳିତା ॥

# ଗୀତି ଚଇତାଳି

ବର୍ଷା ନାଚୁଛି ରିମ୍ ଝିମ୍ ଗାଇ
ମେଘ ମଙ୍ଗଳ ଗୀତ
ଧୂସର ଧରଣୀ ସବୁଜ ସେନେହେ
ବର୍ଷାକୁ ଡାକେ ମିତ ॥

କେଳି କଦମ୍ବ ମଧୁର ମହକେ ମାଳତୀ ମାଧବୀ କୁଞ୍ଜେ
ଶତ ଶିହରଣ ଯାଏ ବୋଲି ବୋଲି ସଜଳ ଶୀତଳ ସଞ୍ଜେ
ଶ୍ୟାମ ସଉରଭେ ନୀତି ମନ ପ୍ରାଣ
ହୋଇ ଉଠେ ପୁଲକିତ ॥

ଝିଙ୍କାରୀ ଗାଏ ଝଙ୍କାର ତୋଳି ସମୀରଣ ସୁରେ ସୁରେ
ନଦୀର ଅଙ୍ଗେ ଜଳ ତରଙ୍ଗେ ପ୍ରୀତି କଲ୍ଲୋଳ ଭରେ
ଶ୍ରାବଣରେ ଲାଗେ ପ୍ରୀତି ପାର୍ବଣ
ପ୍ରାଣ ହୁଏ ପୁଲକିତ ॥

# ଗୀତି ଚଇତାଲି

ବର୍ଷା... ବର୍ଷା... ବର୍ଷା
ଝର ଝର ଝର ଝର ବର୍ଷା
ଭାରି ବର୍ଷିଳ - ଭାରି ସ୍ୱପ୍ନିଳ
ତାକୁ ଦେଖି ମନେ ଜାଗେ ଈର୍ଷା
ଈର୍ଷା... ଈର୍ଷା... ଈର୍ଷା ॥

ଚଉଦିଗେ ଚାଲେ ତା'ର ଚର୍ଚ୍ଚା
ଆକାଶଟା ହୁଏ ନାହିଁ ଫର୍ଚ୍ଚା
ତା' କୋଳେ ବିଜୁଳି ମାରେ ବର୍ଚ୍ଛା
ବଜ୍ର ନାଦରେ ଯାଏ ମୂର୍ଚ୍ଛା
ପ୍ରଳୟର ଗୀତ ଗାଏ... ବର୍ଷା ॥

ତନୁରେ ତା ଓଦା ମାଟି ଗନ୍ଧ
ପଦେ ତା'ର ନୁପୁରର ଛନ୍ଦ
ବେଳେ ବେଳେ ଲାଗେ ନାହିଁ ମନ୍ଦ
ହେଲେ ଦେଖି ମନେ ଜାଗେ ଦ୍ୱନ୍ଦ
କାହା ପ୍ରଣୟିନୀ ଏଇ ବର୍ଷା ॥

ବାରେ ବାରେ କରି ମତେ ମଗ୍ନ
ମନ ତଳେ ବୋଳେ ମଧୁ ସ୍ୱପ୍ନ
ଆଶା କରେ ନିରାଶାରେ ଭଗ୍ନ
ଆସେ ନେଇ ବିରହର ଲଗ୍ନ
ତେଣୁ ତାକୁ ପାଏ ନାହିଁ ଭରସା ॥

ମୋ ବୁକୁରେ କେତେ ତାତି
ବରଷା କି ବୁଝିବ
ଶୀତଳ ସମୀର ବହି ସେ ତାତିକୁ ତେଜିବ ।।

ବରଷା ଖୋଜୁଛି ଖାଲି ଓଦା ମାଟି ମହକ
ମୁଁ ବୁଝିଛି ସେ ମହକେ ଅଛି କେତେ ଡହକ
ବିଜୁଳିର ଇସାରାରେ ସେ କି ମନ ତୋଷିବ ।।

ଯାତନାକୁ ଜାଣେ ନା ସେ ବୁଝେ ନାହିଁ ଜୀବନ
ଉଜୁଡା ମନେ ସେ ଖାଲି ବୋଳିଯାଏ ସପନ
ସପନକୁ ସାଥୀ କରି ମନ କିବା ଭରିବ ।।

ବରଷା କିଶୋରୀଟିଏ ବୟସରେ ବାଳିକା
ମନ ଉପବନେ ଖାଲି ଫୁଟାଏ ସେ କଳିକା
ପ୍ରେମିକା ନ ହେଲେ ମନ ଦରଦ କେ ବୁଝିବ ।।

# ଗୀତି ଚଇତାଳି

ବାସନ୍ତୀ ସାଜି ବସନ୍ତେ ଆସି ବର୍ଷାରେ ଗଲା ଚାଲି
କେମିତି କହିବି ମନ୍ଦ ଗାମିନୀ ଛନ୍ଦ ଜାଣେନା ବୋଲି ॥

ନିଶିର ନୟନୁ ଝରୁଛି ଶିଶିର
. ଶିଶିର ପରଶେ ପରାଣ ଅଧୀର
ବନିତା ବୁଝେନା ବିରହ ବେଦନା
ମରମେ ମରେ ମୁଁ ଘାରି ॥

ହେମ ହରିଣୀର ପ୍ରେମ କାହାଣୀରେ
ଯୋଗ ବିଯୋଗର ଅଙ୍କ
ପୀରତି ସରଳରେଖା ନୁହେ ତା'ର
ବାର ନଈ ତେର ବାଙ୍କ
କଥାରେ କାଉଁରୀ ଚୋରା ଚାହାଣୀରେ
ମରୀଚିକା ଝିଲିମିଲି ॥

କାକର ହକଳା ହେମନ୍ତ ମୋର
ସୁଖ ଶିରୀ ନେଲା ହରି
ହରିଣୀ ଦୃଶାର ବଣିଜ ବେଭାର
ହୃଦୟ କରିବା ଚୋରି
ହଂସ ଗାମିନୀ ପାରିଲା କେମିତି
ହଂସୁଲି ଶେଯ ଭୁଲି ॥

# ଗୀତି ଚଇତାଳି

ଶୁଣ ସଖା ମୋର ଗୀତି କବିତାର
ସଜଳ ଏ ସ୍ୱରଲିପି
ସଞ୍ଜେ ବିଜନେ ଏକାକୀ ନିଜନେ
ଗାଏ ଯାହା ଚୁପି ଚୁପି ॥

କବି କଳାକାର କହିଥିଲେ ଯାହା
ସରଳ ଏ ସତ କଥା
ଆଶ୍ରୟ ବିନା ବଞ୍ଚି ନ ପାରେ
କବିତା ବନିତା ଲତା
ତୁମରି ବିହୁନେ ନିତି ପ୍ରତିକ୍ଷଣେ
ଜଳୁଛି ଜୀବନ ବ୍ୟାପି ॥

ତୁମେ ମଗଧର ନରେଶ ଅଶୋକ
ପାରୁନି ତୁମକୁ ଡାକି
ମୁଁ ଯେ କଳିଙ୍ଗ ଧୀବର କନ୍ୟା
ଅତୀତର କାରୁବାକୀ
ତୁମ ମୋ ଭିତରେ ଦୂରତା ଅନେକ
ପାରିନାହିଁ ଯାହା ମାପି ॥











# ଗୀତି ଚଇତାଳି

ପ୍ରଦୀପର ଶିଖା ନିଜେ ଜଳି ଜଳି ଯାଏ
ନିଜର ଦହନେ ଆନର ଜୀବନେ
ଆଲୋକ ବିତରି ଯାଏ ॥

ସେଇ ଦୀପ ଶିଖା ହୋଇ ମୁଁ ଜଳୁଛି
ଆମ ପ୍ରୀତି ନଈ ଧାରେ
ଦୁଃଖ ପାଇଛି ନିଜକୁ ଜାଳିଛି
ତୁମ ସୁଖ ଦେଖିବାରେ
କେତେ ମୁଁ ଦେଇଛି – କେତେ ମୁଁ ପାଇଛି
ସେ ହିସାବ ଭୁଲି ଯାଏ ॥

କଥା କହାଣୀରେ ଭରା ଏ ଜୀବନ
ବ୍ୟଥା ଚିର ସହଚର
ଦୁଃଖ ଭୁଲାଏ ହସକୁ ମୋହର
ଝରେ ଲୁହ ଝର ଝର
ନଥିବି ଯେବେ ମୁଁ ମୋ ପାଇଁ ଗାଇବ
ମୋ ଲେଖା କବିତାଟିଏ ॥



# ଗୀତି ଚଇତାଳି

ତୁମେ କହିଥିଲ ଏଇ ନଦୀ ଭଳି
ବହିଯାଏ ଆମ ଜୀବନ
ହେଲେ ନଦୀ ଜଳ ତା'ର ଦୁଇ କୂଳ
କରେ ତ ଶ୍ୟାମଳ ବରଣ
ତେବେ କହ କିଆଁ ନଦୀ କୂଳେ ରହି
ବୁକେ ଭରା ଏତେ ଦହନ ।।

ଜୀବନ ତରୁରେ ସଞ୍ଜ ମଳୟ
ଭରିଦିଏ ନାହିଁ ନବ କିଶଳୟ
ସ୍ମୃତିର ସବୁଜ କଳିକା ଧରେନା
ଆସେନା ଫୁଲର ଫଗୁଣ ।।

ଚପଳ ଚଇତ ଚିହ୍ନି ପାରେନା
କେତେ ମୋ ଦୁଃଖ କେତେ ଯନ୍ତ୍ରଣା
କଣ୍ଟା ଫୁଲର କବିତା ଲେଖି ମୋ
ଜୀବନ ରକତେ ରଙ୍ଗୀନ ।।



# ଗୀତି ଚଇତାଳି

ଜଳରେ ଦାଗ ରହେନା
ମନରୁ ଦାଗ ଲିଭେନା ॥

ସ୍ମୃତି ସବୁ ମେଘ ହୋଇ
ମନର ଆକାଶ ଛାଏ
ସେ ମେଘ ରଙ୍ଗ ଲାଗି
ମନ ସିନା କଳା ହୁଏ
ମେଘରୁ ବାରି ଝରେନା
ଆଖିରୁ ଲୁହ ଶୁଖେନା ॥

ସୁଖ ନାମେ ଶୁକ ପକ୍ଷୀ
ସୁନୀଳ ଆକାଶେ ଉଡେ
ଚାହିଁ ଚାହିଁ ପଥ ତା'ର
ମନ ହଜିଯାଏ ଝଡେ
ଚାହିଁବା ନାମ ବେଦନା
(ହେଲେ) ଚାହେଁ ଯା' ତାକୁ ପାଏନା ॥

# ଗୀତି ଚଇତାଳି

ଅଳପ ଭାଷାରେ
ଅନେକ କଥା ମୁଁ
କହିବାକୁ ଲେଖେ କବିତା
ହେଲେ ମୋର ଭାଷା ବୁଝେନା ରାଧିକା
ବୁଝିପାରେ ଏକା ଲଳିତା ॥

କଜଳ କେଶୀର ସଜଳ ଚାହାଣୀ
ଆଖିର ଭାଷାରେ ଅନେକ କାହାଣୀ
ବୁଝିପାରେ ମୁହିଁ ହେଲେ ମୋ ମରମ
ବୁଝେନା କି ଲାଗି ବନିତା ॥

ତା' ଓଠ ହସକୁ ମୁଁ ଚାହିଁ ରହେ
ହେଲେ ଲୁଷିବାକୁ ସିଏ ଭଲ ପାଏ
ମୋହନ ବୁକୁରେ ଦହନ ଦିପାଳୀ
ଜାଳେ ନିତି ଗୋପ ଦୁହିତା ॥

# ଗୀତି ଚଇତାଳି

କହିବି ଆଜି ମୁଁ କଥାଟିଏ
କଥା ନୁହେଁ ସେ' ତ ବ୍ୟଥାଟିଏ
ହୃଦୟ ଭିତରେ ସରାଗେ ସାଇତା
ଜୀବନର ପ୍ରେମ ଗାଥାଟିଏ ॥

ଯାହାକୁ ପ୍ରଥମେ ଭଲ ପାଇଥିଲି
ନାମ ତା'ର ଥିଲା କବିତା
ଦେଲା ଉପହାର ଯେତେ ଥିଲା ତା'ର
ସୁରଭିତ ସ୍ନେହ ମମତା
ଜାଣି ମୁଁ ନଥିଲି ପୀରତି ଏମିତି
ପରାଣକୁ ନିତି ମହାକାଏ ॥

ଭଲ ପାଇବାର ଭଉଁରୀ ଭିତରେ
କବିତା ହୋଇଲା କାହାଣୀ
ଦୂରେ ହଜିଗଲା ଜୀବନ ପଥରେ
ଆଉ ଏବେ ଖୋଜି ପାଏନି
ତଥାପି ରହିଛି ବୁକୁ ତଳେ ହୋଇ
ନୀଳ ନିରଜନ ଢେଉଟିଏ ॥

# ଗୀତି ଚଇତାଳି

ବନ୍ଧୁ... ଆଜି ମୁଁ ଏକା
ମାୟାବିନୀ ମହା ନଗରୀରେ ଭରା
ମିଠା ମିଠା ମରୀଚିକା ॥

ଭାବିଥିଲି ଦିନେ ଲେଖିବି ଜୀବନେ
କୃଷ୍ଣଚୂଡ଼ାର ଗୀତ
ଶିଶିର ହଜଲା ସକାଳ ସରିଛି
ସନ୍ଧ୍ୟା ଯେ ଉପଗତ
ରଙ୍ଗିଣୀ ରାତି ରଙ୍ଗ ସଭାରେ
ପୀରତି ରଙ୍ଗ ଫିକା ॥

ନୟନରେ ନାହିଁ ପ୍ରୀତିର କଜଳ
ମନରୁ ହଜିଛି ସୁର
ଅଛି ଯାହା ଖାଲି ଜୀବନରେ ଭରା
ଶୂନ୍ୟତା ହାହାକାର
ମତେ କରି ପର ଗଲା ବହୁ ଦୂର
ମୋ ମନର ମାଳବିକା ॥

# ଗୀତି ଚଇତାଳି

ଆଗୋ ମୋର ସ୍ମୃତିମୟ
ସ୍ମୃତିରେ ସ୍ମୃତିରେ ତୁମେ ଅକ୍ଷୟ
ତୁମେ ଚିର ସ୍ମରଣୀୟ ॥

ତୁମରି ସେନେହ ସୃଜନୀର ଧାରା
ଶୀତଳ ପରଶ ଭରେ ମନ ସାରା
ମଳୟର ସାଥେ ବହି ଅବିରତ
କରେ ବେଳା ମଧୁମୟ ॥

ବେଦନା ମୋ ଯାଏ ବିଳାସେ ବଦଳି
ତନୁ ମନ ଯାଏ ପୁଲକିତ କରି
ନ ହେଲେ ମୁଁ ବଧୂ ତୁମରି ବନ୍ଧୁ
ତମେ ଚିର ବରଣୀୟ ॥

# ଗୀତି ଚଇତାଳି

ମଣିଷର ମନ ଘନ ଅରଣ୍ୟ
କେତେ ରହସ୍ୟ ଘେରା
କେବେ ଉଏଁ ତହିଁ ସକାଳ ସୁରୁଜ
କେବେ ବା ଚନ୍ଦ୍ର ତାରା ॥

ମନ ସାଗରରେ ଅସୁମାରୀ ଢେଉ
ଅହରହ ମଥା ପିଟେ
ଦୃଷ୍ଟି ହୁଏ ନାହିଁ ତାହିଁ ମଣିଷର
ଚେହେରା ଚିଁତ୍ରପଟେ
ବାହାରେ ଶାନ୍ତ ଭିତରେ କ୍ଳାନ୍ତ.
ଆହତ ଜୀବନ ସାରା ॥

ନିଭୃତ ମନ ଅନ୍ତରାଳରେ
ଅନେକ ଆର୍ତ୍ତନାଦ
ଦୁଃଖ ଯାତନା କାମନା ବାସନା
ବେଦନା ତିକ୍ତ ସ୍ୱାଦ
ଗଭଝରା ଏ ମନର ଗହନ
କେତେ ହାହାକାରେ ଭରା ॥

# ଗୀତି ଚଇତାଳି

ସୂର୍ଯ୍ୟ ଉଇଁଲେ ପକ୍ଷୀ କୂଜନେ
ଝରେ ମିଠା ମିଠା ଗୀତ
ଗୀତି ସୁରେ ଖେଳେ ଏଇ ମନ ତଳେ
ଶ୍ରାବଣ ଫଗୁଣ ଶୀତ ॥

ପଲ୍ଲବି ଉଠେ ଶାଖାରେ ଶାଖାରେ
ସବୁଜ ପତ୍ର ମାଳା
ବୃକ୍ଷ ପାଲଟେ ସଲ୍ଲଜ ବଧୂ
ବର୍ଷାଳୀ ବନ ବାଳା
ବିହଙ୍ଗ କାକଳୀ କାନନେ ବିପିନେ
କାନେ କାନେ କହେ ମିତ ॥

ମଞ୍ଜରୀ ପାଶେ ଗୁଞ୍ଜରେ ଅଳି-
ପ୍ରୀତିର ପୂରବୀ ସୁର
ଶିରାରେ ଶିରାରେ ସଞ୍ଚରି ଯାଏ
ମଧୁମୟ ଝଙ୍କାର
ତୋରା ଚଇତାଳି ପରଶେ ଶିହରି
ତନୁ ମନ ପୁଲକିତ ॥

# ଗୀତି ଚଇତାଳି

ବଞ୍ଚିବା ପାଇଁ ପାଲିସ୍ କରିବା ଏ ଜୀବନେ ହେଲା ନାହିଁ
ମାରିଯିବା ଭଲ ଗୀତ ଲେଖି ଗାଇ କଳାକାରଟିଏ ହୋଇ ।।

ଗୋଟିଏ ପାଖରେ ସଂସାର ମୋର
ସଙ୍ଗୀତ ଆର ପାଖେ
ସୃଷ୍ଟି ହଜିବ ମାତି ରହିଲେ ମୁଁ
ଖାଲି ସଂସାର ସୁଖେ
ଯିବ ସଙ୍ଗୀତ କଳା ସାହିତ୍ୟ ଜୀବନୁ ମେଲାଣି ନେଇ ।।

ଭଲ ଗୀତ ପଦେ ଲେଖି ଗାଇବାକୁ
ଯେତିକି ସମୟ ଲୋଡା
ହେତିକି ସମୟ ବଞ୍ଚିବା ଚାହେଁ
ତା'ପରେ ପତ୍ର ଝଡ଼ା
ସାର୍ଥକ ହେବ ସୃଷ୍ଟି ମୋହର ନଥିଲେ ଶୋଚନା ନାହିଁ ।।

ଦୁନିଆଁ କହିବ ରସରାଜ ଗଲେ
ମନଛୁଆ ଗୀତ ଲେଖି
ହଜି ଯିବାପରେ ବଞ୍ଚି ରହିବି
ଗୀତ ହେବ ତାର ସାକ୍ଷୀ
ସଂସାର ଆଉ ସଙ୍ଗୀତ କେବେ ସାଥି ହୋଇ ରହେ ନାହିଁ ।।

# ଗୀତି ଚଇତାଳି

ପ୍ରେମ ଏକ ନଦୀ ଜଳ
ଛଳ ଛଳ ଶୀତଳ
ମନ ମରୁଭୂମି ସେ ଯେ କରିପାରେ ଶ୍ୟାମଳ ॥

ସେ ନଈର କୂଳେ ଆସି ଜୋଛନା ଯୁବତୀ ହୁଏ
ମଳୟର ସଉରଭ ବାଟ ଭୁଲି ଚାହିଁ ରହେ
ସେ ନଈରେ ସ୍ନାନ କଲେ
ବୟସଟା ଷୋହଳ ॥

ସେ ନଦୀର କୂଳେ ବଣ ସେ ବଣରେ ଫୁଲ ମେଳା
ସେ ବଣରେ ଚାଲେ ଖାଲି ଫୁଲ ଫଗୁଣର ଖେଳା
ବୟସର ବେଳାଭୂମି
ତା' ଛୁଆଁରେ ଛବିଳ ॥

# ଗୀତି ଚଇତାଳି

ନୀରବ ନିଶୀଥେ ନୟନ ନଦୀର ତୀରେ
ବିଗତ ବେଳାର ବିଦାୟୀ ବନ୍ଧୁ
ତୁମେ ଆସ ବାରେ ବାରେ ॥

ଥିଲ କମନୀୟ କନକ ଚମ୍ପା କଳିକା
ବେଦନା ବିଧୁର ବିଳାସିନୀ ଏକ ବାଳିକା
ଆସ ବେଳେ ବେଳେ ମଧ ରାତିର
ମିଠା ମିଠା ସପନରେ ॥

ରାକା ରଜନୀର ରମଣୀୟ ପ୍ରୀତି ଜୋଛନା
ଢାଳୁଥିଲ ଦିନେ ଲାଜେ ଲାଜେ ଆଗେ ଲଳନା
ମୋହୁଥିଲ ମନ ଚୋରା ଚାହାଣୀରେ
ଗୀତ ଗାଇ ସୁରେ ସୁରେ ॥

ଦରଦ ଭରା ସେ ଗୀତି ସୁର ଝୁରି ମରମେ
ବକୁଳ ବାସରେ ବିଗତକୁ ଖୋଜେ ଭରମେ
ଅତୀତର ପ୍ରୀତି ଅଭୁଲା ସେ ଗୀତି
ଆଜି ସୁର ହୋଇ ଝରେ ॥



# ଗୀତି ବଇତାଳି

କଣ୍ଟା ଫୁଲର କବିତାକୁ ମୋର କରନାହିଁ ଅନୁକମ୍ପା
ନୁହେ ସେଇ ଫୁଲ ବାସ୍ନା ବିଭୋର ମଲ୍ଲୀ ଚାମେଲି ଚମ୍ପା ॥

ହୃଦୟର କେତେ ରୁଧୀର ଝରିଛି
ସେ କବିତା ଲେଖିବାରେ
କରୁଣ ରାଗିଣୀ କେତେ ମୁଁ ତୋଳିଛି
ବର୍ଷାର ବେହେଲାରେ
ମୋ କବିତା ଖେଳେ ମୋ ମନ ଆକାଶେ
ମେଘରେ ଯେସନେ ସଂପା ॥

ବୟସୀ ନଈର ବଙ୍କା ବାଟରେ
ବିଶ୍ରାମହୀନ ହୋଇ
ବ୍ୟର୍ଥ ଆଶାରେ ବିଳପି ଖୋଜିଛି
ଆଶ୍ରୟ ଟିକେ ପାଇ
ପ୍ରୀତି ପ୍ରଜାପତି ହୋଇ ଉଡିଆସ
ଆଜି ମୋର ପାଶେ କିଂପା ॥

# ଗୀତି ଚଇତାଳି

ଭୃରୁ ଭୂଗୋଳରେ ତମ ଭୀରୁ ଭୀରୁ ଚାହାଣୀ
ଭାଦର ଭଉଁରୀ ଭରା ପୀରତିର କାହାଣୀ ॥

ପଦ୍ମ ବନରେ ତମ ପ୍ରଜାପତି ଡେଣାରେ
ପରାଗ ମୁଁ ହୁଏ ବୋଲି କ୍ଲାନ୍ତ ମୋ ତନୁରେ
ତନ୍ୱୀ କିଶୋରୀ ଆଗୋ ଚମ୍ପକ ବରଣୀ ॥

ଭଙ୍ଗା କାମନା ମୁଁ ଯେ ଭାଗ୍ୟର ଆକାଶେ
ଭାସି ଭାସି ଘୁରି ବୁଲେ ଭାବନାର ବିଳାସେ
ଯଉବନ ମହୁବନେ ବିତେ ନିତି ଯାମିନୀ ॥

ଭଗ୍ନ ବୀଣାରେ ମୋର ସ୍ୱରଲିପି ସାଜିବ
ଭିକ୍ଷା ମାଗୁଛି କେବେ ସୁର ହୋଇ ବାଜିବ
ଭରା ଭାଦରର ସମ ଆଗୋ ମେଘ ବରଣୀ ॥





# ଗୀତି ଚଇତାଳି



ମୋ ପ୍ରିୟାର ଚାହାଣୀରେ ସକାଳର ଶୁଭ୍ରତା
ମମତାର ମହ ମହ ଗନ୍ଧ
କଥା ଆଉ କାହାଣୀରେ ନିରିଜନ ମନ ତଳେ
ବୋଲିଯାଏ ଅକୁହା ଆନନ୍ଦ ॥



ପହିଲି ଆଷାଢ଼େ ସିଏ କଦମ୍ବ ଫୁଲଟିଏ
ମେଘ ମେଦୁରିତ ଆକାଶରେ
ହୃଦୟର ତନ୍ତ୍ରୀରେ ବ୍ୟଥାର ଶୀର୍ଣ୍ଣ ବୀଣା
ଛୁଇଁଦେଲେ ବାଜେ ସୁରେ ସୁରେ
ଉର୍ମିଳ ନୀଳ କେଶ କଥା କୁହା ଓଠ ଆଉ
ଗତିରେ ତା' ମରାଳର ଛନ୍ଦ ॥





ନନ୍ଦନ ବନରେ ସେ ଚନ୍ଦନ ସମ ବାସେ
ବନ୍ଧନହୀନ ଦୁଇ ଆଖି
କେମିତି କହିବି ତାକୁ ବନର ନୀଳିମା ଛାଡ଼ି
ହେବା ପାଇଁ ପଞ୍ଜୁରୀ ପକ୍ଷୀ
ମନର ବନରେ ରହି ସୁବାସିତ କରୁଥାଉ
ହୃଦୟର ଗୋପନ ଅଳିନ୍ଦ ॥













# ଗୀତି ଚଇତାଳି

ତୁମେ ରହିଗଲ ଏ ଜୀବନେ ହୋଇ
ଅତୀତର ଏକ ସ୍ମୃତିଟିଏ
ଯେଉଁ ସ୍ମୃତି ନିତି ଅବସର ବେଳେ
ମନ ମନ୍ଦିର ମହକାଏ ॥

ଭରେ ସେ ଛନ୍ଦ ଜାଗେ ଆନନ୍ଦ
ଲାଗେ ନା ମନ୍ଦ ତା ମଧୁ ଗନ୍ଧ
ମନେ ତୋଳି ଧରି ମୋ ଅତୀତ ମୁହିଁ
ଲୁହ ବରଷାରେ ଓଦା ହୁଏ ॥

ସେ ଦିନ ବିଳାସ ଆଜି ମୋ ବିଳାପ
ହୋଇ ପାଏ ରୂପ ହସେ ମୁଁ ଅଳପ
ସ୍ମୃତିରେ ସୂତାରେ ଗୁନ୍ଥା ଜୀବନ
ଦୁଃଖ ସୁଖର ମାଳାଟିଏ ॥



# ଗୀତି ଚଇତାଳି

କେମିତି କହିବି ଏଇ ଜୀବନରେ
ସ୍ମୃତି ମୋର କେତେ ଆପଣା
ନିଜର ବୟସ ବଢ଼ି ବଢ଼ି ଯାଏ
ସ୍ମୃତିର ବୟସ ବଢ଼େନା ।।

ହେଲେ ସ୍ମୃତି ଭାରି ପରଶ କାତର
ଜୀବନକୁ କରେ ସପନ ମଧୁର
ବିଗତ ଅତୀତ ରୂପ ଦେଖିବାକୁ
ସ୍ମୃତି ସିନା ଏକ ଆଇନା ।।

ବୟସ ସରିଲେ ପ୍ରେମ ସରେ ନାହିଁ
ପ୍ରେମର ପରିଧି ମାପି ହୁଏ ନାହିଁ
ପ୍ରୀତି ପାଦପରେ ସ୍ମୃତି ଜଳ ଢାଳେ
ହୁଏ ସେ ଶ୍ୟାମଳ ବରଣା ।।

# ଗୀତି ଚଇତାଳି

ମୋ ଅତୀତ ଅମୃତମୟ
ତା'ପରଶେ ମନ ହୁଏ ପୁଷ୍ପିତ ପୁଲକିତ
ଆଲୋକିତ ସଉରଭମୟ ॥

ମୋ ଅତୀତ ମୋର ମିତ ଫୁଲ ଫଗୁଣର ଗୀତ
ଛାୟା ଛବି ସମ ହୁଏ ମୋ ନୟନେ ଅଭିନୀତ
ଅତୀତର କେତେ ସ୍ମୃତି ଆତ୍ମାର ଅନୁଭୂତି
କରେ ମତେ ସଙ୍ଗୀତମୟ ॥

ଅତୀତକୁ ଭଲପାଇ ଅତୀତକୁ ଝୁରି ଝୁରି
ଜାଣେ ଦିନେ ଦୁନିଆଁରେ ଏ ଜୀବନ ଯିବ ସରି
ସମ୍ମାନ ସ୍ୱୀକୃତି ଆଜି ମୋର ପରିଚିତି
କରେ ମତେ ଗଉରବମୟ ॥

# ଗୀତି ଚଇତାଳି

ପ୍ରେମ... ବରଣୀୟ
ପ୍ରେମ... ସ୍ମରଣୀୟ
ପ୍ରେମ ବନ୍ଦନୀୟ   ଅଭିନନ୍ଦନନୀୟ ॥

ପ୍ରେମ ହେଲା ଏକ ଶୀତ ସକାଳର ସୋରିଷ ଫୁଲର କ୍ଷେତ
ଫୁଲର ଓଠରୁ ପରଜାପତିର ମହୁ ପିଇବାର ଗୀତ
ଶାନ୍ତ ଶୀତଳ କାନ୍ତ କୋମଳ
ନମନୀୟ କମନୀୟ ॥

ସାରା ଦୁନିଆଁରେ କେହି ତ କାହାରେ ପ୍ରେମକୁ ଶିଖାଏ ନାହିଁ
କରି ହୁଏ ନାହିଁ ପ୍ରେମ କେବେହେଲେ ଯାଏ ଆପେ ଆପେ ହୋଇ
ହୃଦୟ ସାଥୀରେ ହୃଦୟ ମିଳିଲେ
ପ୍ରେମ ହୁଏ ମଧୁମୟ ॥

ଭଲ୍‌ପାଇବାର ଭୂଗୋଳ ଭିତରେ ପ୍ରେମର ସଂଜ୍ଞା ମିଳେ
ଗୋପନ ମନର କୋଠରୀ ଭିତରେ ପ୍ରେମର ଦିପାଳୀ ଜଳେ
ଜୀବନର ପଥ କରି ଆଲୋକିତ
କରେ ସଉରଭମୟ ॥

## ରସରାଜଙ୍କ ପ୍ରକାଶିତ ଗୀତି କବିତା ସଂକଳନ

| | |
|---|---|
| ୧. ଦୁଇଟି ଆଖିର କବିତା | (ଆଧୁନିକ ଗୀତି) |
| ୨. ନିବେଦନ | (ଭକ୍ତି ଗୀତି) |
| ୩. ମେଘ ଫଗୁଣ | (ଋତୁ ଗୀତି) |
| ୪. ବନ୍ଧୁ ଭରା ବସୁନ୍ଧରା | (ଦେଶ ଭକ୍ତି ଗୀତି) |
| ୫. ଠିଆ ପୁଚି ନାରଙ୍ଗ | (ପଲ୍ଲୀ ଗୀତି) |
| ୬. ଚିତ୍ର ଗୀତି | (ଚଳଚ୍ଚିତ୍ର ଗୀତି) |
| ୭. ପ୍ରୀତି ପ୍ରଜାପତି | (ଆଧୁନିକ ଗୀତି) |
| ୮. ଗୀତରେ ଗୀତରେ ଗପ | (ସଙ୍ଗୀତ ରୂପକ) |
| ୯. ରସରାଜ ଗୀତି ମାନସ | (ସମୀକ୍ଷା ସଂକଳନ) |
| ୧୦. ରସରାଜ ଗୀତି ବିଚିତ୍ରା | (ମିନି ଗ୍ରନ୍ଥାବଳୀ) |
| ୧୧. ଗୀତି ଚଇତାଳି | (ଆଧୁନିକ ଗୀତି) |

## ରସରାଜ ଗୀତିକୁଞ୍ଜ ପ୍ରକାଶିତ ଗୀତି କବିତା ସଂକଳନ

| | |
|---|---|
| ୧. ସେ ଗାଁର କିଆ ଫୁଲ | ଶ୍ରୀ ଜୀବନାନନ୍ଦ ପାଣି |
| ୨. ଅବନୀ ଗନ୍ଧା | ଶ୍ରୀ ଗୁରୁକୃଷ୍ଣ ଗୋସ୍ୱାମୀ |
| ୩. ମନ ମଧୁମତୀ | ଶ୍ରୀମତୀ ସ୍ନେହଲତା ମହାନ୍ତି |
| ୪. ମନ ପକ୍ଷୀ ଝୁରେ | ଶ୍ରୀ ବୃନ୍ଦାବନ ଜେନା |
| ୫. ଏଇ କଳା ମୋର କଳଙ୍କ | ଶ୍ରୀମତୀ ବିନୋଦିନୀ ଦେବୀ |
| ୬. ଚର୍ଚ୍ଚାର ଚୌହଦୀରେ ଗୀତି କବିତା | (ସଂକଳିତ ସମୀକ୍ଷା ଓ ସମାଲୋଚନା) |



ସେ ରସରାଜ ! ରସ କବିତାର କୁଞ୍ଜବନରେ ତାଙ୍କର ନିତ୍ୟ ରାସ । ତାଙ୍କ ଲେଖନୀରେ ଭାବର ମହକଭରା ଶବ୍ଦର ରଙ୍ଗିନ୍ ଫୁଲମାନେ ବସନ୍ତର ଫୁଲ ହୋଇ ଫୁଟନ୍ତି, ବର୍ଷାର ନୀର ହୋଇ ଝରନ୍ତି, ଶୀତର ଗୀତ ହୋଇ ମନ ମୋହି ନିଅନ୍ତି ଏବଂ ଶରତର ସୁନୀଳ ଆକାଶରୁ ଢାଳନ୍ତି ନୀଳଜ୍ୟୋସ୍ନା । ଗୀତି-ସାହିତ୍ୟ ଜଗତ ପାଇଁ ତାଙ୍କର ଅମୂଲ୍ୟ ଅବଦାନ ହେଲା ରସରାଜ ଗୀତିକୁଞ୍ଜ । ଭାରତ ସରକାର, ଓଡ଼ିଶା ସରକାର, ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ, ଓଡ଼ିଶା ଚଳଚ୍ଚିତ୍ର ଉନ୍ନୟନ ନିଗମ, ସଙ୍ଗୀତ ସୁଧାକର ବାଳକୃଷ୍ଣ ଦାଶ ଫାଉଣ୍ଡେସନ୍,ଉତ୍କଳ ସାହିତ୍ୟ ସମାଜ ଇତ୍ୟାଦି ବହୁ ସାହିତ୍ୟ ଓ ସାଂସ୍କୃତିକ ଅନୁଷ୍ଠାନ ସେଇ ପ୍ରତିଭାର ଜୟଗାନ କରି ତାଙ୍କୁ ପୁରସ୍କୃତ ଓ ସମ୍ମାନିତ କରିଛନ୍ତି । ଉତ୍ତୀର୍ଣ୍ଣ ବୟସରେ ଆଜି ବି ତାଙ୍କର ଲେଖନୀ ତାରୁଣ୍ୟର ତେଜରେ ଦୀପ୍ତିମନ୍ତ ।


ପ୍ରକାଶକ



**ରସରାଜ ଗୀତିକୁଞ୍ଜ**

ଏ-୨୨୪,ସେକ୍ଟର-ଏ,ଜୋନ୍-ବି,

ମଞ୍ଚେଶ୍ୱର ଶିଳ୍ପାଞ୍ଚଳ, ଭୁବନେଶ୍ୱର-୧୦